# ଜୀବ ଜଗତର ଅଜବ ଗପ



ଶ୍ରୀ ବାସୁଦେବ ମହାପାତ୍ର

# ଜୀବ ଜଗତର ଅଜବ ଗପ

( ପ୍ରଥମ ଭାଗ )

(ଶ୍ରେଷ୍ଠ ଶିଶୁ ସାହିତ୍ୟ ରୂପେ ଓଡ଼ିଶା ସରକାରଙ୍କ ଦ୍ୱାରା ପୁରସ୍କୃତ)

ଲେଖକ :
ଶ୍ରୀ ବାସୁଦେବ ମହାପାତ୍ର, ବି. ଏ., ଡ଼ି. ଇଡ଼.
ରାଜ୍ୟ ପୁରସ୍କାର ପ୍ରାପ୍ତ ଶିକ୍ଷକ

ପ୍ରକାଶକ :
ଜନସ୍ଥ ବୁକ୍ ଷ୍ଟୋର
ବାରାକ୍ସ, ବ୍ରହ୍ମପୁର-୧

ମୂଲ୍ୟ 

ଏଥିରେ ଅଛି—







# ଘୋଡ଼ାର କାହିଁକି ଶିଙ୍ଗ ନାହିଁ ?

ବହୁ ବର୍ଷ ପୂର୍ବେ ଗାଈ ମଇଁଷିଙ୍କ ପରି ଘୋଡ଼ାର ମଧ୍ୟ ଦୁଇଟି ଶିଙ୍ଗ ଥିଲା । ଅନ୍ୟ ସବୁ ଜନ୍ତୁଙ୍କର ଶିଙ୍ଗଠାରୁ ଘୋଡ଼ାର ଶିଙ୍ଗ ବେଶି ଟାଣୁଆ ଓ ମୁନିଆ ଥିଲା । ଶିଙ୍ଗ ଦୁଇଟି ବି ଭାରି ସୁନ୍ଦର ଦିଶୁଥିଲା । ସେଥିପାଇଁ ଘୋଡ଼ା ଛାତି ଫୁଲାଇ ଚାଲେ । ସମସ୍ତଙ୍କ ଆଗରେ ନିଜେ ବଡ଼ ବୋଲି ଦେଖାଇ ହୁଏ ।

ଏହିପରି ଅନେକ ଦିନ ବିତିଗଲା । ଘୋଡ଼ାର ବଡ଼ାଇ ଦିନକୁ ଦିନ ବଢ଼ିଲା । ଅନ୍ୟ ପଶୁମାନେ ଏହା ସହି ପାରିଲେ ନାହିଁ । କ'ଣ କଲେ ଘୋଡାର ବଡ଼ାଇ ଭାଙ୍ଗିବ, ଏ କଥା ସମସ୍ତେ ଭାବିଲେ । ଶେଷକୁ ବିଲୁଆ ନନା କହିଲା—ତୁମ୍ଭେମାନେ ନିଶ୍ଚିନ୍ତ ରହ । ମୁଁ ଘୋଡ଼ାର ବଡ଼ାଇ ଛଡ଼ାଇ ଦେବି ।

ଦିନେ ବିଲୁଆ ନନା ଘୋଡାର ଘରଆଡ଼େ ବୁଲି ବାହାରିଲା । ସେତେବେଳେ ଘୋଡ଼ା ଘରେ ଥାଏ । ବିଲୁଆ ନନା କହିଲା— କ'ଣ ମଉସା ତମର ସବୁ ଭଲ ତ ?

ଘୋଡ଼ା କହିଲା—ମୋର ସବୁବେଳେ ସବୁ ଭଲ । ଆଜି ଏମିତି ଅବେଳରେ କୁଆଡେ ଆସି ଗଲୁ କହେ ?

ବାଲୁଆ ନନା କହିଲା—ନାଇଁ, ଏଣେ ଟିକେ ବୁଲି ଆସିଥିଲି । ତୁମେ ଜାଣ କି ମଉସା, ଆଜି ଜନ୍ତୁ ମହଲରେ ଭାରି ଗୋଟିଏ ଚହଲ ପଡ଼ିଯାଇଛି ।

ଘୋଡ଼ା ପଚାରିଲା—କି ଚହଲ କହେ ?

ବାଲୁଆ ନନା କହିଲା—ଆଜି କୁଆଡୁ ଗୋଟିଏ କାଳିଆ ଷଣ୍ଢ ସେ ପୋଖରୀ ପାଖ ବଡ଼ ପଡ଼ିଆକୁ ଆସିଥିଲା । ପଡ଼ିଆ ମଝିରେ ସେ ଯେଉଁ ବଡ଼ ମାଟି କୁଦଟା ନଥିଲା ମଉସା, ତାକୁ ସେ ଏକାଥରକେ ତା ଶିଙ୍ଘରେ ତାଡ଼ି ପକାଇଲା । ଏହି କଥା ଦେଖି ସମସ୍ତେ ତାକୁ ଭାରି ପ୍ରଶଂସା କଲେ । କେହି କେହି କହିଲେ—ଏଇ ଷଣ୍ଢର ଶିଙ୍ଘ ଘୋଡ଼ାର ଶିଙ୍ଘଠାରୁ ଢେର ଟାଣ । ଘୋଡ଼ା ଏଇ ମାଟି କୁଦଟା କ'ଣ ସେ ଆର ପଡ଼ିଆରେ ଥିବା ସାନ ମାଟି କୁଦଟାକୁ ବି ତାଡ଼ି ପାରିବନି ।

ଏହା କହିସାରି ବାଲୁଆ ନନା ଘୋଡ଼ା ମୁହଁକୁ ଚାହିଁ ମୁରୁକି ମୁରୁକି ହସିଲା ।

ଘୋଡ଼ା ସେତେବେଳକୁ ରାଗରେ ପାଚି ଗଲାଣି । ସେ କହିଲେ—କ'ଣ କହିଲେ, ମୁଁ ତାଡ଼ିପାରିବି ନାହିଁ ? ଛାର ଷଣ୍ଢଟା କ'ଣ ମୋଠାରୁ ବେଶି ବଳୁଆ ? ହଉ, ଚାଲ ସେଇ ମାଟି କୁଦ ପାଖକୁ । ଏହା କହି ସେ ଦୌଡ଼ିଯାଇ ସାନ ମାଟି କୁଦ ପାଖରେ ପହଞ୍ଚିଲା । ବାଲୁଆ ବି ତା ପଛେ ପଛେ ଯାଇ ସେଠାରେ ହାଜର ହେଲା ।

ଖରାଦିନ ଦି' ପହର । କୁଦର ମାଟି ଶୁଖି ପଥର ହୋଇ ଯାଇଛି । ଘୋଡ଼ା ପ୍ରଥମେ ଚାରି ପାଞ୍ଚ ପାହୁଣ୍ଡ ପଛକୁ ଘୁଞ୍ଚିଗଲା । ତା ପରେ ଆଗକୁ ଦୌଡ଼ିଯାଇ ଶିଙ୍ଘରେ କୁଦକୁ ଜୋରରେ ଭୁଷିଦେଲା । ଏବେ ସେ ଯାଏ କୁଆଡେ ! କୁଦରେ ବାଜି ତା' ଶିଙ୍ଘ ଦୁଇଟି ଭାଙ୍ଗିଗଲା । ଝର ଝର ହୋଇ ରକ୍ତ ବହିଲା । ସେ ବିକଳରେ ହେଁ ହେଁ ହୋଇ ଘାସରେ ଗଡ଼ିବାକୁ ଲାଗିଲା ।

ବିଲୁଆ ଏହା ଦେଖି କହିଲା ଠିକ୍ ହୋଇଛି, ଘୋଡ଼ା ମଉସା ତୁମର ଶିଙ୍ଘ ସବୁଦିନ ପାଇଁ ଯାଇଛି । ଏଣିକି ଆଉ କାହା ଆଗରେ ବଡ଼ାଇ କରିପାରିବ ନାହିଁ । ତୁମେ ଏମିତି ଘାସରେ ଗଡ଼ୁଥାଅ । ମୁଁ ଯାଉଛି, ଅନ୍ୟମାନଙ୍କୁ ଏ ଶୁଭ ଖବରଟା ଦେଇଦିଏ । ନମସ୍କାର ।

ଏହା କହି ବିଲୁଆ ଦଉଡ଼ି ଚାଲିଗଲା । ବିଚାରା ଘୋଡ଼ା ମନ ଦୁଃଖରେ କାନ ମୁଣ୍ଡ ଆଉଁସି ଘରକୁ ଫେରିଲା ।

ସେହିଦିନଠାରୁ ଘୋଡାର ଆଉ ଶିଙ୍ଘ ନାହିଁ ।





# ସାପ କାହିଁକି ଗାତରେ ରହେ ?

ଆଜିକି ଅନେକ ଦିନ ତଳର କଥା । ସେତେବେଳେ ସାପ ଓ ଚିଲମାନେ ଭାରି ସାଙ୍ଗ ଥିଲେ । ଦିନରେ ଚିଲମାନେ ଶିକାର କରିଯାନ୍ତି । ସେମାନେ ସାପକୁ ଘର ଜଗାଇ ଦିଅନ୍ତି । ଚିଲମାନେ ବସାକୁ ଫେରିଲାଯାଏଁ ସାପ ସେମାନଙ୍କ ପିଲାଛୁଆଙ୍କୁ ଜଗେ । ରାତି ହେଲେ ଶିକାର ଖୋଜି ବୁଲେ ।

ଥରେ ରାତିରେ ବହୁତ ଖୋଜି ଖୋଜି ସାପ ଶିକାର ପାଇଲା ନାହିଁ । ଭୋକରେ ତା ପେଟ ଆଉଟୁ ପାଉଟୁ ହେଲା । କ'ଣ କରିବ ଆଉ ? ଝରଣାରୁ ପାଣି ମନ୍ଦେ ପିଇ ଗଛ ମୂଳରେ ଶୋଇଗଲା । ହେଲେ ରାତିସାରା ତା ଆଖିକ ନିଦ ଆସିଲାନି ।

ସକାଳ ହେଲାରୁ ସାପ ଉଠି ସିଧା ଚାଲିଲା ଚିଲମାନଙ୍କ ବସାକୁ । ସେ ଚିଲମାନଙ୍କୁ କହିଲା – ମୁଁ ରାତିସାରା ଭୋକରେ ଛଟପଟ ହେଲି । କାଲି ଗୋଟିଏ ହେଲେ ଶିକାର ଜୁଟିଲାନି ।

ଚଲମାନେ କହିଲେ—ଆଚ୍ଛା, ତୁମେ ଆମର ଛୁଆଙ୍କ ପାଖରେ ଥାଅ । ଆମେ ଏଇକ୍ଷଣି ତୁମକୁ ଶିକାର ଆଣିଦେବୁ ।

ସାପ ସବୁଦିନ ପରି ଚଲ ବସାରେ ଜଗି ରହିଲା । ଚଲମାନେ ଶିକାର ଖୋଜିବା ପାଇଁ ଉଡ଼ି ଚାଲିଗଲେ । ବସା ଭିତରେ ଚଲଙ୍କର ସାତଟି ଅଣ୍ଡା ଥିଲା । ତା' ଦେଖି ସାପ ପାଟିରୁ ଲାଳ ଗଡ଼ିଲା । ସେ ଆଗ ପଛ କିଛି ନ ଭାବି ଗୋଟିକ ପରେ ଗୋଟିଏ କରି ସାତଟିଯାକ ଅଣ୍ଡା ଗିଳି ପକାଇଲା ।

ଏତିକିବେଳେ ଗୋଟିଏ ଚଲ ସାପ ପାଇଁ ବେଙ୍ଗଟିଏ ଧରି ଆସିଲା । ବସାରେ ପହଞ୍ଚି ଦେଖିଲା, ଗୋଟିଏ ହେଲେ ଅଣ୍ଡା ନାହିଁ । ସେ ସାପକୁ ପଚାରିଲା—ଅଣ୍ଡା ସବୁ କ'ଣ ହେଲା କି ?

ସାପର ବୁଦ୍ଧି ବଣା ହୋଇଗଲା । ସେ ଡ଼ରି ମରି ଅତରଛରେ କହି ପକାଇଲା—ଚରି ବୁଲି ଯାଇଥିବେ ।

ଚଲ ରାଗିଯାଇ କହିଲା--ଅଣ୍ଡାସବୁ କ'ଣ ଚରି ବୁଲିଯାଆନ୍ତି ? କ'ଣ ହୋଇଛି, ସତ କହ । ନ ହେଲେ ଭଲ ହେବନି କହୁଛି ।

ସାପକୁ ଦଶ ଦିଗ ଅନ୍ଧାର ଦିଶିଲା । କ'ଣ ଉତ୍ତର ଦେବ ସେ କିଛି ଭାବି ପାରିଲାନି । ତରବରରେ କହିଦେଲା—ଛେଳି ପଲେ ଚରିବାକୁ ଆସିଥିଲେ ଯେ ସେମାନେ ଖାଇଦେଲେ ।

ଏଥିରେ ଶଲର ରାଗ ଦେଖେ କିଏ ? ସେ ସାପ ଉପରକୁ ଡେ଼ଇଁପଡ଼ି ତା' ଫଣାକୁ ଖୁମ୍ପିବାକୁ ଲାଗିଲା । ସାପ ପ୍ରାଣ ବିକଳରେ ଏପଟ ସେପଟ ହୋଇ ଦଉଡ଼ୁଥାଏ, ଶଲ ତାକୁ ଗୋଡ଼ାଉଥାଏ । ଶେଷରେ ସାପ ପ୍ରାଣ ବିକଳରେ ଧାଇଁ ଯାଇ ଗୋଟିଏ କୋରଡ ଭିତରେ ଲୁଚିଗଲା । ଶଲ ତାକୁ ଆଉ ଖୋଜି ପାଇଲା ନାହିଁ, ବସାକୁ ଫେରି ଆସିଲା । କିନ୍ତୁ ମନରେ ସାପ ଉପରେ ଭାରି ରାଗ ରଖିଲା । ଯେଉଁବେଳେ ଦେଖିବ, ସେ ତାକୁ ଖାଇବ । ସାପ ଏବେ କରେ କ'ଣ ?

ସେଥିପାଇଁ ବିଚରା ସାପ ସେଦିନଠାରୁ ଶଲକୁ ଡ଼ର ଭୁଇଁ ଭିତରେ ଗାତକରି ରହିଲା ।





# କୋଇଲି କାହିଁକି
# କାଉ ବସାରେ ଅଣ୍ଡା ଦିଏ ?

କୋଇଲିର ନାଁ ତୁମେ ଶୁଣିଥିବ । କେହି କେହି କୋଇଲିକୁ ଦେଖିଥିବ । ତାର ଗୀତ କେଡ଼େ ମଧୁର । ସେ ଆମ୍ବ ତୋଟାରେ ଲୁଚି ରହି କୁହୁ କୁହୁ କରି ଗୀତ ଗାଏ । କୋଇଲି ଅଣ୍ଡା ଦିଏ ସତ, ହେଲେ ସେ ତା' ଅଣ୍ଡାକୁ ଫୁଟାଏ ନାହିଁ । ସେ କାଉ ବସାରେ ଅଣ୍ଡା ଦେଇଯାଏ । କାଉ ଓ କୋଇଲିର ଅଣ୍ଡା ଏକାପରି ଦେଖାଯାଏ । ତେଣୁ କାଉ, କୋଇଲି ଅଣ୍ଡାକୁ ଫୁଟାଇ ଦିଏ । କୋଇଲି ଛୁଆ ମଧ୍ୟ କାଉ ଛୁଆ ପରି ଦେଖାଯାଏ । ଟିକିଏ ବଡ଼ ହେଲା ଯାଏଁ କାଉ, କୋଇଲି ଛୁଆକୁ ପାଳେ । ଯେତେବେଳେ ସେଇଟି କୋଇଲି ଛୁଆ ବୋଲି ଜାଣେ, ତାକୁ ଖୁମ୍ପି ନିଜ ବସାରୁ ବାହାର କରିଦିଏ । କୋଇଲି କାହିଁକି କାଉ ବସାରେ ଅଣ୍ଡା ଛାଡ଼ିଯାଏ, ସେ ବିଷୟରେ ଗୋଟିଏ ମଉଜିଆ ଗପ ଅଛି । ତୁମେ ଶୁଣିବ ପିଲାଏ ? ହଉ, ତେବେ ଶୁଣ ।

ପୂର୍ବ କାଳରେ କୋଇଲି ଅନ୍ୟ ପକ୍ଷୀମାନଙ୍କ ପରି ନିଜ ଅଣ୍ଡାକୁ ଛୁଆ କରୁଥିଲା । ସେ ସମୟରେ କୋଇଲି ଭାରି ଚଗଲି ଥିଲା । ସେ ଏଣୁ ତେଣୁ କହି ଦୁଇ ଦଳଙ୍କ ଭିତରେ ଝଗଡ଼ା ଲଗାଇ ଦେଉଥିଲା । ସେ ଭାରି ଚାଲାକ୍ ଥିଲା । ତେଣୁ ଅନ୍ୟ ପଶୁ ପକ୍ଷୀ ତାରି କୌଶଳ ବୁଝିପାରୁ ନ ଥିଲେ । ଅନ୍ୟମାନେ ନିଜ ନିଜ ଭିତରେ କଜିଆ କଲାବେଳେ କୋଇଲି ମନକୁ ମଜା ହେଉଥାଏ, ଆଉ କୁହୁ କୁହୁ ହୋଇ ଗୀତ ଗାଉଥାଏ ।

ଦିନକର ଘଟଣା । ରାତ ପାହିପାହି ପାହି ନ ଥାଏ । ତପସ୍ୟା କରିବା ପାଇଁ ଜଣେ ବାବାଜୀ ଗୋଟିଏ ନଈକୂଳକୁ ଆସିଲେ । ସେ ଆସନଟି ବାଲି ଉପରେ ବିଛାଇ ଦେଲେ । କମଣ୍ଡଳୁଟି ଆଗରେ ଥୋଇଲେ । ତା ପରେ ସେ ଆଖି ବୁଜି ଧ୍ୟାନରେ ବସିଲେ । ଏତିକିବେଳେ ନଈ କୂଳ ଆମ୍ବ ଗଛରେ କୋଇଲି ବସିଥିଲା । ବାବାଜୀ ଆଖି ବୁଜିବା ଦେଖି ସେ ମନେ ମନେ ଭାବିଲା - ଆଜି ବାବାଜୀର ମଜା ଦେଖିବ । ତା ଧ୍ୟାନ ବଡ଼ କି ମୋ ଗୀତ ବଡ଼ ପରୀକ୍ଷା କରିବ ।

ଏହା ଭାବି ସେ ଜୋରରେ କୁହୁ କୁହୁ କରି ଗୀତ ଗାଇଲା । ଥରକରେ ବାବାଜୀଙ୍କର ଆଖି ଖୋଲିଲା ନାହିଁ । ଏହା ଦେଖି କୋଇଲି ଆହୁରି ଜୋରରେ ଗୀତ ଗାଇଲା । ବାବାଜୀ ଆଖି ଖୋଲି ଚାହିଁଲେ । ତା ପରେ ପୁଣି ସେ ଆଖି ବନ୍ଦ କରିଦେଲେ । କୋଇଲି ତ ସହଜରେ ଛାଡ଼ିବା ପକ୍ଷୀ ନୁହେଁ ସେ ପୁଣି ଯେତେ ଜୋରରେ ପାରେ କୁହୁ କୁହୁ କଲା । ବାବାଜୀ

ଆଖି ଖୋଲି କହିଲା—କିଏ ସେ ତୁ ଦୁଷ୍ଟ, ମୋ ଧ୍ୟାନ ଭାଙ୍ଗିଲୁ ? ହଁ, ବୁଝିଲି ତୁ ସେଇ ଦୁଷ୍ଟ କୋଇଲି ନା ?

ତହୁଁ ରାଗରେ ସେ କୋଇଲିକୁ ଶାପ ଦେଲେ—ତୁ ଜୀବନରେ କେବେ ହେଲେ ଛୁଆମାନଙ୍କ ସୁଖ ପାଇବୁ ନାହିଁ ।

ସୂର୍ଯ୍ୟ ସିନା ପଶ୍ଚିମରେ ଉଦୟ ହେବେ, ବାବାଜୀଙ୍କ କଥା ଟଳିବ ନାହିଁ । କୋଇଲି ବୁଝିଗଲା, ଆଜିଠାରୁ ତାର ବଂଶ ବୁଡ଼ିଲା । ଏଣିକି ତାର ମଜା ଦେଖେ କିଏ ? ସେ କାନ୍ଦି କାନ୍ଦି ଯାଇ ବାବାଜୀଙ୍କ ଗୋଡ଼ ତଳେ ପଡ଼ିଲା । ବାବାଜୀଙ୍କୁ କହିଲା—କ୍ଷମା କର ପ୍ରଭୁ, ମୋର ଦୋଷ ହୋଇଛି । ସାମାନ୍ୟ ଦୋଷ ପାଇଁ ମୋତେ ଏତେ ବଡ଼ ଦଣ୍ଡ ଦେଉଛ । ମୋତେ କ୍ଷମା କର ।

କୋଇଲିର ବିକଳ ଦେଖି ବାବାଜୀଙ୍କର ରାଗ ଟିକିଏ ଥଣ୍ଡା ପଡ଼ିଗଲା । ସେ କହିଲେ—ମୋର କଥା କେବେ ଅନ୍ୟଥା ହେବ ନାହିଁ । ତେବେ ଏତିକି କରିପାରେ । ତୋର ଛୁଆ ହେବ, ମାତ୍ର ତୁ ସେମାନଙ୍କୁ ପାଳି ପାରିବୁ ନାହିଁ । ଛୁଆ ପାଳିବା ସୁଖ ତୋ ଜୀବନରେ ପାଇବୁ ନାହିଁ ।

ସେଥିଯୋଗୁଁ କୋଇଲି ଲୁଚି ଲୁଚି ଆସି କାଉ ବସାରେ ଅଣ୍ଡା ଛାଡ଼ି ଦେଇଯାଏ ।





# ମୟୂରର ସୁନ୍ଦର ପୁଚ୍ଛ କୁଆଡୁ ଆସିଲା ?

ହଜାର ହଜାର ବର୍ଷ ତଳର କଥା । ସେତେବେଳେ ମୟୂରର ଏପରି ସୁନ୍ଦର ପୁଚ୍ଛ ନ ଥିଲା । କୁକୁଡ଼ା ପରି ଛୋଟ ଖାଲି ଦୁଇଟି ଡେଣା ଥିଲା ।

ବଇଶାଖ ମାସରେ ଉଦୁଉଦିଆ ଦି' ପହର ବେଳ । ଟାଇଁ ଟାଇଁଆ ଖରା । ତଳେ ଧାନ ପକାଇଦେଲେ ଖଇ ଫୁଟିଯିବ । ଜନ୍ତୁମାନେ ବିକଳ ହୋଇ କିଏ ବୁଦାମୂଳେ, କିଏ ପାଣି ପାଖରେ ପଡ଼ି ରହିଛନ୍ତି । ଖରାକୁ ବାହାରିବାକୁ କାହାରି ଜୁ ନ ଥାଏ ।

ଏହି ସମୟରେ ବୁଢ଼ା ଲୋକଟିଏ ଖରାରେ ବାଟ ଚାଲୁଥିଲା । ତଳେ ତାତି, ଉପରେ ତାତି । ସେ ଆଉ ଚାଲି ପାରିଲା ନାହିଁ ।

ପାଖରେ ଗଛ ବୃକ୍ଷ କିଛି ନଥିଲା । ସେଥିପାଇଁ ସେ ଛଟପଟ ହୋଇ ପ୍ରାଣ ବିକଳରେ ଆଗକୁ ମାଡ଼ି ଚାଲୁଥିଲା ।

କିଛି ଦୂର ଗଲା ପରେ ବୁଢ଼ାଟି ଗୋଟିଏ ବର ଗଛ ଦେଖିଲା । ସେଠାକୁ ଆସି ସେ ଗଛ ମୂଳରେ ବସି ଥକା ମାରିଲା । ବର ଗଛ ପାଖ ଗଡ଼ିଆରୁ ପେଟେ ପାଣି ପିଇ ଗଛ ଛାଇରେ ଶୋଇଗଲା । ଖରାରେ ବାଟ ଚାଲି ଚାଲି ସେ ଭାରି ହାଲିଆ ହୋଇ ଯାଇଥିଲା । ତେଣୁ ଶୋଇ ଶୋଇ ସେ ଘୁଙ୍ଗୁଡ଼ି ମାରିଲା ।

ସେଇ ଗଛ ପାଖରେ ଗୋଟିଏ ବୁଦା ଥିଲା । ସେଠାରେ ଗୋଟିଏ ମୟୂର ରହୁଥିଲା । ଲୋକଟିଏ ଏକୁଟିଆ ଶୋଇବା ଦେଖି ସେ ତା ପାଖକୁ ଆସିଲା । ସେତେବେଳେ ବୁଢ଼ା ଦେହରୁ ଗମ୍ ଗମ୍ ହୋଇ ଝାଳ ବହୁଥାଏ । ମୟୂର ତା ଡେଣାରେ ବୁଢ଼ାକୁ ବିଞ୍ଚିବାକୁ ଲାଗିଲା ।

ଏହିପରି କିଛି ସମୟ ଗଲା । ବୁଢ଼ା ସେହିପରି ନିଦରେ ଘୁଙ୍ଗୁଡ଼ି ମାରୁଥାଏ । ଏତିକିବେଳେ ଗୋଟିଏ ଗୋଖର ସାପ ବୁଢ଼ା ଆଡ଼କୁ ଆସିଲା । ମୟୂର ଦେଖିଲା, ସାପ ନିଶ୍ଚୟ ବୁଢ଼ାକୁ ଚୋଟ ମାରିବ । ବୁଢ଼ାକୁ ଚୋଟ ମାରିବା ପାଇଁ ସାପ ଯେମିତି ଫଣା ଟେକିଛି, ମୟୂର ତା ଥଣ୍ଟରେ ସାପର ଫଣାକୁ କାମୁଡ଼ି ଧରିଲା । ତା ପରେ ସାପଟିକୁ ଦଗଡ଼ି କରି ଖାଇଦେଲା । ସେ ପୁଣି ବୁଢ଼ାକୁ ତା ଡେଣାରେ ବିଞ୍ଚିବାକୁ ଲାଗିଲା ।

କିଛି ସମୟ ପରେ ବୁଢ଼ା ଆଖି ମଳି ମଳି ନିଦରୁ ଉଠିଲା । ମୟୂର ତାକୁ ବିଞ୍ଚୁଥିବା ଦେଖି ସେ ଭାରି ଖୁସି ହେଲା । ମୟୂର

କହିଲା—ତୁମକୁ ଏବେ ଗୋଟାଏ ସାପ ଚୋଟ ମାରୁଥିଲା, ମୁଁ ତାକୁ ମାରି ଖାଇଗଲି ।

ଏହା ଶୁଣି ବୁଢ଼ା ମନକୁ ମନ ହସିଲା । ତାର ମୟୂର ଉପରେ ଭାରି ଦୟା ହେଲା । ସେ ମୟୂରକୁ କହିଲା—ତୁ କ ବର ମାଗୁଛୁ ମାଗ ।

ମୟୂର କହିଲା—ମୋତେ ସବୁଠାରୁ ସୁନ୍ଦର ପୁଚ୍ଛ ଦିଅ ।

ବୁଢ଼ା କହିଲା—ତାହା ହେଉ ।

ଦେଖୁଁ ଦେଖୁଁ ମୟୂର ଦେହରେ ଭାରି ସୁନ୍ଦର ପୁଚ୍ଛ ହୋଇଗଲା । ବୁଢ଼ା ଲୋକଟି କୁଆଡ଼େ ଉଭେଇଗଲା । ସେ ବୁଢ଼ାଟି କିଏ ଜାଣ ? ସେ ହେଉଛନ୍ତି ନିଜେ ଭଗବାନ । ଜୀବଜନ୍ତୁଙ୍କୁ ପରୀକ୍ଷା କରିବା ପାଇଁ ସେ ଆସିଥିଲେ ।





## ଏଣ୍ଡୁଅ କାହିଁକି ମୁଣ୍ଡ ଠୁଙ୍ଗାରେ ?

ଅନେକ ବର୍ଷ ତଳର କଥା । ସେତେବେଳେ ସବୁ ପ୍ରକାର ଜୀବଜନ୍ତୁ ଜଙ୍ଗଲରେ ରହୁଥାନ୍ତି । ସିଂହ ଥିଲା ପଶୁମାନଙ୍କର ରାଜା । ବିଲୁଆ ଥିଲା ପଶୁରାଜଙ୍କର ମନ୍ତ୍ରୀ । ଠେକୁଆ ରଜାଙ୍କର ପୁରୋହିତ ଥିଲା । ସବୁ ଜନ୍ତୁମାନେ ପଶୁରାଜଙ୍କର କଥା ମାନି ଚଳୁଥାନ୍ତି । ବିଲୁଆ ଓ ଠେକୁଆ ପଶୁରାଜଙ୍କୁ ବୁଦ୍ଧି ବତାଇ ଦିଅନ୍ତି ।

ଦିନକର ଘଟଣା । ଗୋଟିଏ ପଡ଼ିଆରେ ଷଣ୍ଢଟିଏ ଚରୁଥିଲା । ସିଆଡ଼ୁ ଗୋଟିଏ ଘୋଡ଼ା ସେହି ପଡ଼ିଆକୁ ଚରିବାକୁ ଆସିଲା । ସେ ଷଣ୍ଢ ପାଖକୁ ଲାଗି ଚରିବାକୁ ଲାଗିଲା । ଷଣ୍ଢ କହିଲା—ତୁ ଟିକିଏ ଦୂରରେ ରହି ଚର । ମୋ ପାଖକୁ ଏତେ ଲାଗି ଚରୁଛୁ କିଆଁ ?

ଘୋଡ଼ା କହିଲା—ତୋର ତ କଣ ଭାରି ଦିମାକ୍ ବଢ଼ି ଯାଉଛିରେ । ପଡ଼ିଆଟା କ'ଣ ତୋ ବାପାର ନା ଅଜାର ?

ଷଣ୍ଢ଼ କହିଲା—କରେ, ମୋ ବାପ ଅଜା ତୋର କ'ଣ କଲେ କି ? ତାଙ୍କ ନାଁ । କାହିଁକି ଧରୁଛୁ ? ତୋତେ ଭଲ ଯୋଗ ଥିଲେ ମୋ ପାଖରୁ ହଟି ଯା । ନ ହେଲେ ବୁଝିବୁ, କାଳିଆ କ'ଣ କରିପାରେ ।

ଘୋଡ଼ା କହିଲା—ରଖି ଥା ତୋ ଧମକ । ବେଶୀ ବକ୍ ବକ୍ କଲେ ଏକା ଲାତକେ ତୋର ଅନ୍ତବୁଜୁଲା ଛୁଣ୍ଡାଇ ଦେବି ।

ଏମିତି କଥା ହେଉ ହେଉ ଦୁହିଙ୍କ ଭିତରେ ମାରପିଟ ଲାଗିଗଲା । ଘୋଡ଼ା ପଛେଇ କରି ଷଣ୍ଢ଼କୁ ଲାତ ମାରିଲା । ଷଣ୍ଢ଼ ଆଗେଇ ଯାଇ ଘୋଡ଼ାକୁ ଶିଙ୍ଘରେ ଭୁଷିବାକୁ ଲାଗିଲା । ଦୁଇ ଜନ୍ତୁଙ୍କର ଧୂମ୍ ଧାମରେ ଧୂଳି ଉଡ଼ି ଯାଉଥାଏ । ଶେଷରେ ଦୁହେଁ ହାଲିଆ ହେଲେ । ଦୁହିଁଙ୍କ ଦେହ ଗୋଡ଼ ଛିଣ୍ଡି ଧାର ଧାର ହୋଇ ରକ୍ତ ବହିଲା । ହେଲେ କାହାରି ରାଗ କମିଲା ନାହିଁ ।

ଷଣ୍ଢ଼ କହିଲା—ମୁଁ ଯାଉଛି, ରଜାଙ୍କ ଆଗରେ ତୋ ନାଁରେ ନାଲିଶ୍ କରିବି ।

ଘୋଡ଼ା କହିଲା—ମୋର କ'ଣ ପାଟି କୁଆଡେ ଚାଲିଗଲା କି ? ମୁଁ କ'ଣ ଆଉ ରଜାଙ୍କୁ କହି ପାରିବିନି ନା ?

ଏତିକିବେଳେ ଦୁହିଁଙ୍କର ଆଖି ଏଣ୍ଡୁଅ ଉପରେ ପଡ଼ିଲା । ସେତେବେଳେ ଏଣ୍ଡୁଅ ଗୋଟିଏ ଗଛରେ ଚଢ଼ି ମାଡଗୋଳର ମଜା ଦେଖୁଥିଲା ।

ଘୋଡ଼ା କହିଲା—ଏଣ୍ଡୁଅ ତ ସବୁ ଦେଖିଛି, ସେ ମୋର ସାକ୍ଷୀ

ଷଣ୍ଢ଼ କହିଲା—ମୋର ବି ସାକ୍ଷୀ ଏଣ୍ଡୁଅ ।

ତହୁଁ ଘୋଡ଼ା ଓ ଷଣ୍ଢ, ଏଣ୍ଡୁଅକୁ ନେଇ ସିଂହ ପାଖକୁ ଗଲେ । ସେମାନେ ରଜାଙ୍କ ପାଖରେ ନିଜ ନିଜ କଥା କହିଲେ । ପଶୁରାଜ ସବୁ କଥା ଶୁଣି ଏଣ୍ଡୁଅକୁ ପଚାରିଲେ—ଆଗେ ଘୋଡା ଷଣ୍ଢକୁ ମାରିବା ତୁ ଦେଖିଛୁ ।

ଏଣ୍ଡୁଅ ଭାରି ଅଡୁଆରେ ପଡ଼ିଲା । ଦେଖିଛି ବୋଲି କହିଲେ ଘୋଡ଼ା ତା ଉପରେ ରାଗି ତାକୁ ମାରି ପକାଇବ । ଦେଖିନାହିଁ ବୋଲି କହିଲେ ଷଣ୍ଢ ଚଢ଼ିଯାଇ ତାକୁ ମାରିବ । ତେଣୁ ସେ କିଛି ନ କହି ଖାଲି ମୁଣ୍ଡ ଟାଙ୍ଗାରିଲା ।

ପଶୁରାଜ ପୁଣି ପଚାରିଲେ—ଆଚ୍ଛା, ଷଣ୍ଢ ଘୋଡ଼ାକୁ ଶିଙ୍ଘରେ ଟାଳିବା ତୁ ଦେଖିଛୁ ? ଏଣ୍ଡୁଅ କିଛି ନ କହି ଖାଲି ମୁଣ୍ଡ ଟାଙ୍ଗାରିଲା ।

ତହୁଁ ପଶୁରାଜ ପଚାରିଲେ—ଦିହିଙ୍କ କଥା କ'ଣ ସତ ?

ଏଣ୍ଡୁଅ ପୁଣି ମୁଣ୍ଡ ଟାଙ୍ଗାରିଲା ।

ପଶୁରାଜ ରାଗିଯାଇ ଏଣ୍ଡୁଅକୁ କହିଲେ—ତେବେ ତୁ ଏଠି କଣ ମଜା ଦେଖିବାକୁ ଆସିଛୁ ?

ଏଣ୍ଡୁଅ ପୂର୍ବପରି ପୁଣି ମୁଣ୍ଡ ଟାଙ୍ଗାରିଲା ।

ପଶୁରାଜ ଏଣ୍ଡୁଅକୁ କହିଲେ—ତୁ ଭାରି ବଦ୍‌ମାସ୍ । ତୁ ସବୁବେଳେ ଏହିପରି ମୁଣ୍ଡ ଟାଙ୍ଗାରୁଥାଅ ।

ସିଂହର ଏ ଆଦେଶରେ ଏଣ୍ଡୁଅ ମୁଣ୍ଡ ଟାଙ୍ଗାରିଲା । ସେ ମୁଣ୍ଡ ଟାଙ୍ଗାରିବା ଆଉ ତାର ସେ ଦିନଠୁ ବନ୍ଦ ହେଲାନି । ଭଲରେ କଣ ମନ୍ଦରେ କଣ, ସେ ସେହିଦିନଠାରୁ ମୁଣ୍ଡ ଟାଙ୍ଗାରେ ।



## ଓଟର କୁଜ କୁଆଡ଼ୁ ଆସିଲା ?

ଗୋଟିଏ ବଣରେ ବିଲୁଆଟିଏ ଥିଲା । ସେଇ ବଣ ନିକଟରେ ଗୋଟିଏ ନଈ ବହି ଯାଉଥିଲା । ନଈ ଆର ପଟେ ଗୋଟିଏ ସୁନ୍ଦର ଆଖୁ କିଆରୀ ଥିଲା । ବିଲୁଆର ଆଖୁ ଖାଇବାକୁ ଭାରି ଇଚ୍ଛା ହେଲା ମାତ୍ର ନଈରେ ପାଣି ଚାଲୁଥାଏ । ତେଣୁ ସେ କିମିତି ନଈ ଆର ପାରିକୁ ଯିବ, ଏ କଥା ସବୁବେଳେ ଭାବୁଥାଏ ।

ଦିନେ ଗୋଟିଏ ଓଟ ସେ ବାଟଦେଇ ଯାଉଥିଲା । ବିଲୁଆ ତାକୁ ଦେଖି କହିଲା—ଓଳକି, ଓଟ ମାମୁଁ, ଏଣେ କୁଆଡେ ଯାଉଥିଲ କି ?

ଓଟ କହିଲା—ଏ ନଈ ଆର ପଟେ ମୋର ସମନ୍ଧି ଘର ଯାଉଛି ଝିଅକୁ ଟିକିଏ ଦେଖି ଆସିବି ।

ବିଲୁଆ କହିଲା—ନଈ ସେ ପାରିରେ ଭାରି ସୁନ୍ଦର ଆଖୁ କିଆରୀଟାଏ ଅଛି । ମୋତେ ଟିକିଏ ନଈ ପାରି କରି ଦିଅନ୍ତ କି, ଦିହେଁ ଯାକ ସେଠାକୁ ଯାଇ ମଜା ମାରି ଆଖୁ ଖାଆନ୍ତେ । ତା ପରେ ତୁମେ ପଛକେ ତୁମ ଝିଅ ଘରକୁ ଯାଆନ୍ତ ।

ବିଲୁଆ କଥାରେ ଓଟ ରାଜି ହୋଇଗଲା । ସେ ବିଲୁଆକୁ ପିଠିରେ ବସାଇ ନଈ ପାରି କରିଦେଲା । ଓଟ ଓ ବିଲୁଆ ମିଶି ପେଟେ ପେଟେ ଆଖୁ ଖାଇଲେ । ଓଟ ଆଖୁ ମିଠା ପାଇ ଝିଅ ଘରକୁ ଯିବା କଥା ଭୁଲିଗଲା । ସନ୍ଧ୍ୟା ହେଲାରୁ ବିଲୁଆକୁ ପିଠିରେ ବସାଇ ନଈ ପାରି କରି ଦେଲା ।

ମିଠା ଆଖୁ ରସ ଓଟ ପାଟିରୁ ଛାଡ଼ିଲାନି । ସେ ତା ପର ଦିନ ବିଲୁଆକୁ ସାଙ୍ଗରେ ନେଇ ଆଖୁ କିଆରୀରେ ଆଖୁ ଖାଇଲା । ଏହିପରି ପ୍ରତିଦିନ ଦିହେଁ ଯାକ ଆଖୁ ଖାଇ ମଜା କରୁଥାନ୍ତି ଆଉ ସଞ୍ଜ ହେଲେ ଘରକୁ ଫେରୁଥାନ୍ତି ।

ଏଣେ ଚାଷୀ ପ୍ରତିଦିନ ସକାଳୁ ଉଠି ଦେଖେ । ଆଖୁ କିଆରୀ ଭିତରେ ପଶି ତାର ଆଖୁ ସବୁ କିଏ ଖାଇ ଯାଉଛି । ତେଣୁ ସେ ତାର ସାଇ ପଡ଼ିଶା ଲୋକଙ୍କୁ ଡ଼ାକି ଠେଙ୍ଗା ଧରି ଦିନେ ଆଖୁ କିଆରୀରେ ଲୁଚି କରି ଜଗିଲା । ମନେ ମନେ ଠିକ୍ କଲା, ଆଜି ସେଇ ସଇତାନ୍ ଚୋରର ପିଠିରୁ ଛାଲ ଉତାରି ଦେବ ।

ସବୁ ଦିନ ପରି ଓଟ ଓ ବିଲୁଆ ଆଖୁ କିଆରୀରେ ପଶିଲେ । ଢ଼ଁ ଗ୍ରର ଖଣ୍ଡ ଆଖୁ ଖାଇଛନ୍ତି କି ନାହିଁ, ଜଗୁଆଳ ଲୋକମାନେ ଧାଇଁ ଆସିଲେ । ବିଲୁଆ ତରବର ହୋଇ ଆଖୁ କିଆରୀ ଭିତରେ ଲୁଚିଗଲା । ଓଟ ତ ଏତେ ବଡ଼ ଜନ୍ତୁ, ସେ ଲୁଚିବ କେଉଁଠି । ଓଟକୁ ଦେଖି ଲୋକମାନେ ତା ପିଠିକୁ ଠେଙ୍ଗାରେ ନିଧୁମ ମାଡ଼ ଦେଲେ । ଓଟ ବିଚରା ବିକଳରେ ଖାଲି ଘଁ ଘଁ ରଡ଼ି ଛାଡ଼ି କୌଣସି ମତେ ଖସି ପଳାଇ ଆସିଲା । ହେଲେ ମାଡ଼ ଜୋରରେ ତା ପିଠି ଫୁଲି ଯାଇ ଗୋଟିଏ ବଡ଼ ବିଣ୍ଡି ହୋଇଗଲା । ସେ ବିଣ୍ଡିଟି ଆସ୍ତେ ଆସ୍ତେ ବଢ଼ି ପିଠିରେ ଗୋଟିଏ ବଡ଼ କୁଜ ହୋଇଗଲା ।





# ପିମ୍ପୁଡ଼ି କାମୁଡ଼ିଲେ ଏତେ କାଟେ କାହିଁକି ?

ଆଜିକି ଅନେକ ବର୍ଷ ତଳର କଥା । ସେତେବେଳେ ପିମ୍ପୁଡ଼ି କାମୁଡ଼ିଲେ ଆଦୌ କାଟୁ ନଥିଲା । ଖାଲି ସଲସଲ ଲାଗୁଥିଲା ।

ସେ ସମୟରେ ଗୋଟିଏ ଗଉଡ଼ ଟୋକା ଥିଲା । ସେ ପ୍ରତିଦିନ ବଣକୁ ଗାଈ ଚରାଇବାକୁ ଯାଏ । ସାଙ୍ଗରେ ବଇଁଶୀଟିଏ ନେଇଥାଏ । ଗାଈମାନଙ୍କୁ ଚରିବା ପାଇଁ ଛାଡ଼ିଦିଏ । ସେ ଗଛ ଛାଇରେ ବସି ମନ ଖୁସିରେ ବଇଁଶୀ ବଜାଏ ।

ଦିନକର ଘଟଣା । ଗଉଡ଼ ଟୋକା ସବୁଦିନ ପରି ଗଛ ତଳେ ବସି ବଇଁଶୀ ଫୁଙ୍କୁଥାଏ । ବଇଁଶୀର ସ୍ୱର ଶୁଣି କୁଆଡ଼ୁ ଗୋଟିଏ ଗୋଖର ସାପ ସେଠାକୁ ଆସି ଗଉଡ଼ ଟୋକାକୁ ଚୋଟେ ମାରିଲା । ପିଲାଟି ସାଙ୍ଗେ ସାଙ୍ଗେ ତଳେ ଲୋଟି ପଡ଼ିଲା । କିନ୍ତୁ ତାର ବଇଁଶୀଟି ଗଛର ଗୋଟିଏ ନୁଆଁଣିଆ ଡାଳରେ ଲାଖି ରହିଗଲା ।

ତା' ପରେ ସାପ ସେଠାରୁ ଧୀରେ ଧୀରେ ଚାଲିବାକୁ ଲାଗିଲା । ହଠାତ୍ ସେ ପୁଣି ସ୍ୱର ଶୁଣିଲା । ପବନ ଲାଗି ଗଛଡ଼ାଳରେ ଥିବା

ବଇଁଶୀଟି ଆପେ ଆପେ ବାଜୁଥିଲା । ସାପ ତାହା ଜାଣି ପାରିଲା ନାହିଁ । ସେ ଭାବିଲା ଗଉଡ ଟୋକା ପୁଣି ବଂଶୀ ବଜାଉଛି । ତାର ବିଷ କିଛି କାମ ଦେଇନି ବୋଲି ସେ ଭାବିଲା । ସେ ଫେରି ଆସି ଗଉଡ଼ ଟୋକାକୁ ପୁଣି ଚୋଟେ ମାରିଲା । ସେ ଆଉ ଥରେ ଫେରି ଯାଉଥିଲା । କିନ୍ତୁ ବଇଁଶୀଟି ପୁଣି ବାଜି ଉଠିଲା । ସାପ ଏକାବେଳକେ ତାଟକା ହୋଇଗଲା । ଦୁଇଥର ଚୋଟ ମାରି ମଧ୍ୟ ପିଲାଟି ମଲାନାହିଁ । ତାର ବିଷ କିଛି କାମ ନ ହେବାରୁ ତାକୁ ଲାଜ ମାଡ଼ିଲା । ତେଣୁ ସେ ଗଉଡ଼ ଟୋକା ଦେହରୁ ବିଷ ଶୋଷିବାକୁ ଲାଗିଲା । କିଛିକ୍ଷଣ ପରେ ନିଦରୁ ଉଠିଲା ପରି ପିଲାଟି ଉଠି ବସିଲା ।

ଏଣେ ସାପ ବିଷତକ ପଦାରେ ବାନ୍ତି କରିଦେଇ ଚାଲିଗଲା । ବିଷ ସବୁ ତଳେ ପଡ଼ିଗଲା । ଏତିକିବେଳେ କାଳିଚାଟ ସେ ବାଟଦେଇ ଆସୁଥିଲା । ସେ ତଳେ ପଡ଼ିଥିବା ବିଷକୁ କ'ଣ ମେଞ୍ଚାଏ କଳାକଳା ଜିନିଷ ମନେକରି ତା ଉପରେ ଗଡ଼ି ଚାଲିଗଲା । ତା ପରେ କଙ୍କଡ଼ା-ବିଛା, କାମୁଡ଼ା ଜନ୍ଦା ଆସି ସେହି ବିଷରେ ଗଡ଼ି ଚାଲିଗଲେ । ତେଣୁ ସେମାନଙ୍କ ଦେହରେ ବିଷ ରହିଗଲା । ଶେଷରେ ଟିକିଏ ଟିକିଏ ବିଷ ଧୂଳି ଉପରେ ଲାଗି ରହିଗଲା । ଏତିକିବେଳେ ପିମ୍ପୁଡ଼ିମାନେ ସେହି ବାଟ ଦେଇ ଆସିଲେ । ସେମାନେ ସେହି ବିଷ ମିଶା ଧୂଳି ଉପରେ ଗଡ଼ିଗଲେ । ତାଙ୍କ ଦେହରେ ବି କିଛି କିଛି ବିଷ ରହିଗଲା ।

ସେହିଦିନଠାରୁ ପିମ୍ପୁଡ଼ି କାମୁଡ଼ିଲେ ଏତେ କାଟୁଛି ।





# ଛେଳି କାହିଁକି ପାଣିକୁ ଡରେ ?

ଅତି ପୂର୍ବ କାଳର କଥା । ସେତେବେଳେ ଗାଈ ବଳଦଙ୍କ ପରି ଛେଳି ମଧ୍ୟ ନିର୍ଭୟରେ ପାଣିରେ ପଶୁଥିଲା । ଅନ୍ୟ ଜନ୍ତୁମାନଙ୍କ ପରି ସେ ପାଣିରେ ଗାଧୋଇ ପାଧୋଇ ଆସୁଥିଲା । ବେଳେ ବେଳେ ସେ ଖୁସିରେ ପହଁରୁ ଥିଲା ।

ସେ ସମୟରେ ଗୋଟିଏ ଭାରି ବଡ଼ ପଡ଼ିଆ ଥାଏ । ସେ ପଡ଼ିଆର ମୁଆଡ଼େ ଚାହିଁବ ଖାଲି ଗୋଡ଼ିବାଲି । ପଡ଼ିଆ ମଝିରେ ଗୋଟିଏ ପୋଖରୀ ଥାଏ । ସେହି ପୋଖରୀ ହୁଡାରେ ବହୁତ ଘାସ ଥାଏ । ସେଠାକୁ ଗୋଟିଏ ହରିଣ ଓ ଗୋଟିଏ ଛେଳି ନିତି ଚରିବାକୁ ଆସନ୍ତି ।

ଏମିତି କିଛି ଦିନ ଗଲା । ଦେଖୁଁ ଦେଖୁଁ ଖରାଦିନ ଆସିଗଲା । ଅନ୍ୟ କେଉଁଠି ଆଉ ଘାସ ମିଳିଲା ନାହିଁ । ଖାଲି ପୋଖରୀ କୂଳରେ

ଖାଲି ଘାସ ଥାଏ । ହରିଣ ଓ ଛେଳି ପ୍ରତିଦିନ ସେଠାରେ ଚରିବାକୁ ଘାସ ସରିସରି ଆସୁଥାଏ । ହରିଣ ଭାବିଲା ଛେଳିକୁ କିପରି ଠକି କରି ଅନ୍ୟ ସ୍ଥାନକୁ ପଠାଇଦେବ । ଛେଳି ତ ବୋକା ଜନ୍ତୁ । ସେ ତା କୌଶଳ ବୁଝି ପାରିବ ନାହିଁ ।

ଏମିତି କିଛି ଦିନ ବିତିଗଲା । ଅମାବାସ୍ୟା ଯାଇଁ ପୂର୍ଣ୍ଣିମା ହେଲା । ହରିଣ ମନକଥା ମନରେ ରଖିଥାଏ । ଦିନେ ସେ ସେଇ ପୋଖରୀ ଆଡ଼େ ବୁଲି ଆସିଥିଲା । ସେତିକିବେଳେ ଛେଳି ବି ସେଠାକୁ ଆସିଥିଲା । ହରିଣକୁ ଭାରି ସୁବିଧା ମିଳିଗଲା । ସେ ଛେଳିକୁ କହିଲା, "ବୁଝିଲୁ ଭାଇ, ଆଜିକାଲି ଆଉ ଏଠାରେ ରହିବା ଭଲ ନୁହେଁ । ମୁଁ କାଲିଠାରୁ ଏ ସ୍ଥାନ ଛାଡ଼ି ଚାଲି ଯାଉଛି ?"

ଛେଳି ପଚାରିଲା, "କାହିଁକି ? କଣ ହେଲା କି ।"

ହରିଣ କହିଲା, 'ଆଉ କ'ଣ ପଚାରୁଛୁ ଭାଇ, ଏବେ ଏଠିକି କୁଆଡ଼ୁ ଗୋଟିଏ ଅସୁର ଆସିଛି । ସେ ପାଣିରେ ଲୁଚିକରି ରହୁଛି । ତାର ଗୋଟାଏ ଗୋଟାଏ ହାତ ତାଳଗଛ ପରି । ମୁହଁଟା ତାର ରୂପା ପରି ଧଳା ଆଉ ଗୋଲ । ଏଠାରେ ଅନେକ ଜନ୍ତୁ ସେ ଖାଇ ଗଲାଣି । ମୋତେ ଭାରି ଡ଼ର ମାଡ଼ୁଛି ।"

ଛେଳି କହିଲା, "ନା, ଏମିତି ଅସୁର ତ ମୁଁ କେବେ ଦେଖିନି । ତୋତେ କିଏ ମିଛରେ କହି ଦେଇଥିବ ।"

ହରଣ ଛେଳକୁ ପୋଖରୀ କୂଳକୁ ଡାକିନେଲା । ସେତେବେଳେ ଆକାଶରେ ଜହ୍ନଥାଏ । ପାଣି ଉପରେ ଜହ୍ନର ଛାଇ ପଡ଼ିଥାଏ । ହରଣ ପାଣିରେ ଥିବା ଜହ୍ନକୁ ଦେଖାଇ କହିଲା, "ଏଇ ଦେଖ, ଏ ହେଲା ସେଇ ଅସୁର । ତାର ମୁହଁଟା କେମିତି ଗୋଲ ଆଉ ରୂପା ପରି ଧଳା ତାର ହାତ ଦଣ୍ଟା ଲୁଚାଇ ରଖିଛି । ହାତ ବଢ଼ାଇଲେ ଆମକୁ ଭିଡ଼ିନେଇ ପାଟିରେ ପକାଇ ଦେବ ।

ଏହା କହି ହରଣ ଛେଳର ଅଜାଣତରେ ଗୋଡ଼ରେ ପାଣିକୁ ଟିକିଏ ହଲାଇ ଦେଲା । ପାଣି ହଲଚଲ ହେବାରୁ ଜହ୍ନଟି ପାଣି ଭିତରେ ବଙ୍କେଇ ହୋଇଗଲା । ଏତିକିବେଳେ ହରଣ ଛେଳକୁ କହିଲା, "ଏବେ ଅସୁର ରାଗି ଗଲାଣି । ଦେଖ, କେମିତି ଏପଟ ସେପଟ ହେଉଛି । ଆଉ ଉପାୟ ନାହିଁ । ଆମକୁ ନିଶ୍ଚୟ ଖାଇ ଦେବ । ଚାଲ ଚଞ୍ଚଳ ପଳାଇବା ।

ହରଣର ଏହି କଥା ଶୁଣି ଛେଳର ପିଲେହି ପାଣି ହୋଇଗଲା । ସେ ଏକା ଡ଼ିଆଁକେ କୁଆଡ଼େ ଚାଲିଗଲା । ସେ ଆଉ କେବେ ପାଣି-ପାଖ ମାଡ଼ିଲା ନାହିଁ । ହରଣ ମଜାରେ ଘାସ ଖାଇ ଝରଣାଦିନଟା କଟାଇ ଦେଲା ।

ସେହି ଦିନଠାରୁ ଛେଳ ପାଣିକୁ ଦେଖିଲେ ଡ଼ରେ । ତା'ର ଯେମିତି ମନେ ପଡ଼ିଯାଏ ପାଣିରେ ଅସୁର ଅଛି ପରା !





# ଗଧ କାହିଁକି ବୋଝ ବୋହେ ?

ଗୋଟିଏ ଜଙ୍ଗଲରେ ଗୋଟିଏ ଘୋଡ଼ା, ଓ ଗୋଟିଏ ଗଧ ରହୁଥିଲେ । ଥରେ ସେମାନେ ଗୋଟିଏ ମଣିଷକୁ ଦେଖିଲେ । ସେମାନଙ୍କୁ ଦେଖି ମଣିଷ କହିଲା, "ଦେଖ, ତୁମେ ଦିହେଁ କେତେ କଷ୍ଟରେ ଏ ଜଙ୍ଗଲରେ ରହୁଛ । ପେଟ ପାଇଁ ଦିନସାରା ଘୂରି ବୁଲୁଛ । ତୁମେ ମୋ ଘରେ ଯଦି ରହିବ ମୁଁ ତୁମକୁ ପେଟେ ପେଟେ ଖାଇବାକୁ ଦେବି । ମୋର ବି କିଛି କାମ ତୁମେ କରିଦେବ ।"

ଏଥିରେ ଘୋଡ଼ା ଓ ଗଧ ରାଜି ହୋଇଗଲେ । ସେମାନେ ମଣିଷର ଘରେ ରହିଲେ । ମଜାରେ ଖାଇବାକୁ ପାଇଲେ । ଘୋଡ଼ା ଗଧଠାରୁ ବେଶୀ ଜୋରରେ ଦୌଡ଼ି ପାରୁଥିଲା । ତେଣୁ ମଣିଷ ଘୋଡ଼ା ପିଠିରେ ବସି ଦୂର ସ୍ଥାନକୁ ଗଲା । ସେ ଘୋଡ଼ାକୁ ଆଦର କରି ତାକୁ ଭଲ ଭଲ ଜିନିଷ ଖାଇବାକୁ ଦେଲା । ଏ କଥା ଗଧକୁ ଭଲ ଲାଗିଲା ନାହିଁ । ସେ ଭାବିଲା—ଘୋଡ଼ା କାହିଁକି ମାଲିକକୁ ପିଠିରେ ବସାଇବ ? ମୁଁ କାହିଁକି ବସାଇବି ନାହିଁ ?

ଦିନେ ଗଧ ମାଲିକକୁ କହିଲା, "ତୁମେ ସବୁବେଳେ ଘୋଡ଼ା ପିଠି ଉପରେ ବସୁଛ । ମୋ ପିଠିରେ ବସିଲେ ମୁଁ ବି ସେହିପରି ତୁମକୁ ନେଇଯିବି ।"

ମାଲିକ କହିଲା, "ନା, ତୁ ତ ନପଟ ଅଳସୁଆ । ତୁ ଜମା ଘୋଡ଼ାପରି ଧାଇଁ ପାରିବୁ ନାହିଁ ।"

ଏକଥା ଶୁଣି ଗଧ ମନରେ ବଡ଼ କଷ୍ଟ ହେଲା । ସତରେ ସେ କଣ ଘୋଡାଠାରୁ ଏତେ ହୀନ । ସେ ମାଲିକକୁ କହିଲା, "ମୁଁ ଯଦି ଘୋଡାପରି ଧାଇଁ ପାରିବି ନାହିଁ ହେଲେ ଘୋଡ଼ା ମୋ ପରି ଜିନିଷ ବୋହି ପାରିବ ନାହିଁ । ତୁମେ ପରୀକ୍ଷା କରି ଦେଖ, କିଏ ବେଶୀ ବୋଝ ବୋହି ପାରିବ ।"

ମାଲିକ ଘୋଡ଼ା ଓ ଗଧ ଦୁହିଁଙ୍କ ଉପରେ ବୋଝ ଲଦିଲା । ବୋଝ ଟିକିଏ ଭାରି ହେଲାରୁ ଘୋଡ଼ା କହିଲା, "ମୁଁ ଆଉ ବୋହି ପାରିବି ନାହିଁ ।" କିନ୍ତୁ ଗଧ ପାଟି ଫିଟାଇଲା ନାହିଁ । ଆଉ ବେଶୀ ବୋହି ପାରିବନି ବୋଲି କହିଲେ ସେ ହାରିଯିବ, ଘୋଡ଼ାପରି ପେଟକୁ ଭଲ ଗଣ୍ଡାଏ ଖାଇବାକୁ ମିଳିବ ନାହିଁ । ଏଣେ ମାଲିକ ଗଧ ପିଠିରେ ବେଳକୁ ବେଳ ବେଶୀ ବୋଝ ଲଦିବାକୁ ଲାଗିଲା । ତାର ବୋଝ ଏତେ ଭାରି ହେଲା ଯେ ତା ପେଟଟି ତଳକୁ ନଇଁ ଆସିଲା । ତଥାପି ସେ ଉଁ ଚୁଁ ନ କରି ଧୀରେ ଧୀରେ ବାଟ ଚାଲିଲା । ମାଲିକ ଦେଖିଲା ଗଧ ଠିକ୍ କାମ ଦେଉଛି । ତେଣୁ ମାଲିକ ଗଧ ପିଠିରେ ମନଇଚ୍ଛା ବୋଝ ଲଦିଲା । ଗଧ ବି ବୋଝ ବୋହି ଦିନେ ହେଲେ ଥକିଗଲା ନାହିଁ । ସେହି କାରଣରୁ ହାରିଯିବା ଡ଼ରରେ ଗଧ ବଡ଼ ବଡ଼ ବୋଝ ବୋହୁଛି ।



# ଛାରପୋକ କାହିଁକି ମଣିଷକୁ କାମୁଡ଼େ ?

ପୂର୍ବକାଳରେ ଗାଈ ବଳଦ ସବୁ ବଣରେ ରହୁଥିଲେ । ବଣର ଫଳମୂଳ, ଘାସ ପତ୍ର ଖାଇ ସେମାନେ ମଜାରେ ଥିଲେ । ବାଛୁରୀ ସବୁ ମା ଠାରୁ ଯେତେ ଇଚ୍ଛା ଦୁଧ ପାଉଥିଲେ । ସେମାନେ ଖୁସିରେ ଏଣେ ତେଣେ ଡେଇଁ ବୁଲୁଥିଲେ ।

ଏହିପରି ଅନେକ ଦିନ ଗଲା । ମଣିଷ ଗାଈ ବଳଦମାନଙ୍କୁ ବଣରେ ଦେଖିଲା । ସେ ସେମାନଙ୍କୁ ଗାଁକୁ ନେଇ ଆସିଲା । ସେ ବଳଦ ବେକରେ ଯୁଆଳି ପକାଇଲା । ତାକୁ ବୋଝ ବୁହାଇଲା । ଖରା ତରାରେ ଦଉଡ଼ାଇଲା । ଦିନସାରା ତାକୁ କାମରେ ଖଟାଇଲା । ଦିନକୁ ଥରେ ଦୁଇଥର ତାକୁ ଖାଇବାକୁ ଦେଲା । ବଣରେ ସେ ପେଟ ପୂରାଇ ଖାଉଥିଲା । ମଜାରେ ବୁଲୁଥିଲା । ମଣିଷ ଘରକୁ ଆସି ସେ ସବୁ ଆଉ ପାଇଲାନି, ସେ ବନ୍ଧା ହୋଇ ରହିଲା ।

ଗାଈ ବାଛୁରୀଙ୍କ ଦଶା ଆହୁରି ଖରାପ ପଡ଼ିଲା । ମଣିଷ ଜାତିଟା ସବୁବେଳେ ଖାଲି ନିଜର ଲାଭ ଦେଖେ । ମଣିଷ ଦିଏ କମ୍ ନିଏ ବେଶୀ । ସେ ଗାଈକୁ କିଛି କିଛି ଖାଇବାକୁ ଦେଲା । କିନ୍ତୁ ତା ବଦଳରେ ଗାଈଠାରୁ ଚିପୁଡ଼ି ଚିପୁଡ଼ି ଦୁଧ ସବୁ ନେଇଗଲା । ବିଚାରି ବାଛୁରୀ ଭାଗରେ ଦୁଧ ପଡ଼ିଲା ନାହିଁ । ସେ ଶୁଖି ଶୁଖି କଣା ହୋଇଗଲା । ବାଛୁରୀର ଦୁଃଖ ଦେଖି ଗାଈ ଆଖିରୁ ଧାର ଧାର ଲୁହ ଗଡ଼ିଲା । କାହା ଆଗରେ ତା ଦୁଃଖ କହିବ ? କିଏ ତା ମନର କଥା ବୁଝିବ ?

ଦିନକରଘଟଣା । ବଳଦ, ଗାଈ, ବାଛୁରୀଙ୍କୁ ଗୁହାଳରେ ବାନ୍ଧିଦେଇ ମଣିଷ ଶୋଇବାକୁ ଗଲା । ଏତିକିବେଳେ ବଳଦ, ଗାଈ, ବାଛୁରୀ ଏକାଠି ମିଶି ଭଗବାନଙ୍କୁ ଡ଼ାକିଲେ । ଏମାନଙ୍କର ଡାକରା ସହି ନ ପାରି ଭଗବାନ ସେଇ ଗୁହାଳକୁ ଆସିଲେ । ସେ ଗାଈକୁ ତା ଖବର ପଚାରିଲେ ।

ଗାଈ କହିଲା, "ପ୍ରଭୁ, ତୁମେ ତ ସବୁ ଜାଣ ! ଆମେ ଆଉ ଅଧିକ କଣ କହିବୁ ? ଏ ମଣିଷ ଆମକୁ ଭାରି କଷ୍ଟ ଦେଉଛି । ମୋର ଦୁଧ ଖାଇ ସେ ପିଲାରୁ ବଡ଼ ହେଉଛି, ମୋଟା ହେଉଛି । କିନ୍ତୁ ଆମକୁ ଖାଇବାକୁ ନ ଦେଇ ଶୁଖାଇ ଶୁଖାଇ ମାରୁଛି ।"

ଭଗବାନ କହିଲେ, "ତେବେ ତୁମେ କଣ କହୁଛ ?"

ଗାଈ ବଳଦ ବାଛୁରୀ ଏକା ସ୍ୱରରେ କହିଲେ, "ମଣିଷ ଯିମିତ ଆମର ରକ୍ତ ଶୋଷୁଛି, ତାର ମଧ୍ୟ ରକ୍ତ କିଏ ଶୋଷୁ । ଦୟା କରି ଏତକ କରିଦିଅ ।"

ଭଗବାନ ସାଙ୍ଗେ ସାଙ୍ଗେ ଗୋଟିଏ ନୂଆ ଜୀବ ସୃଷ୍ଟି କରିଦେଲେ । ତା ନାଁ ଦେଲେ 'ଛାରପୋକ' । ସେ ଛାରପୋକକୁ ଆଦେଶ ଦେଲେ, "ଯା, ଶୀଘ୍ର ତୋର ବଂଶ ବଢ଼ା । ମଣିଷର ଘରର କାନ୍ଥ, ଆଲମାରି, ଖଟ, ମେଜ, ଚୌକିରେ ତୁମେ ସବୁ ଲୁଚି ଛପି ଥିବ । ମଣିଷ ସେଠାକୁ ଆସିଲେ ତା ଦେହରୁ ରକ୍ତ ଶୋଷୁଥିବ । ଯା ତୋ କାମରେ ଲାଗି ଯା ।"

ସେଥିପାଇଁ ଛାରପୋକ ମଣିଷକୁ କାମୁଡ଼େ ।





## ବିଲୁଆ କାହିଁକି ହାତୀକୁ ଦେଖି ଲୁଚିଯାଏ ?

ଥରେ ଗୋଟିଏ ବିଲୁଆ ପୂରା ଛ' ଦିନ ଯାଏଁ କିଛି ଖାଇବାକୁ ପାଇଲା ନାହିଁ । ଭୋକରେ ତା ପେଟ ଖାଲି ଜଳୁଥାଏ । ଖାଇବା ଜିନିଷ ଖୋଜି ଖୋଜି ସେ ଜଙ୍ଗଲରେ ବୁଲିବାକୁ ଲାଗିଲା । ବହୁ ସମୟ ବିତିଗଲା । ହେଲେ ସେ ଦିନ ତାକୁ କେଉଁଠି ହେଲେ ଶିକାର ଜୁଟିଲା ନାହିଁ । ମନ ଦୁଃଖରେ ଯାଉ ଯାଉ ହଠାତ୍ ସେ ସିଂହ ହାବୁଡ଼ରେ ପଡ଼ିଗଲା । ସିଂହକୁ ଦେଖି ବିଲୁଆର ପିଳେହି ପାଣି । ସାକ୍ଷାତ୍ ଯମ ମୁହଁରୁ ସେ ରକ୍ଷା ପାଇବ କିପରି ?

ଭୟରେ ଥର ଥର ସିଂହକୁ ଦଣ୍ଡବତ କରି ବିଲୁଆ କହିଲା—ମହାରାଜ, ମୋତେ ମାରନ୍ତୁ ନାହିଁ । ମୁଁ ସାରା ଜୀବନ ଆପଣଙ୍କ ପାଖେ ପାଖେ ରହି ସେବା କରିବି । ଆପଣ ଯେତେବେଳେ ଯାହା କହିବେ, ତାହା କରିବି ।

ବିଲୁଆର ବିକଳ ଅବସ୍ଥା ଦେଖି ସିଂହ ମନରେ ତା' ପ୍ରତି ଦୟା ଆସିଲା । ସେ ତାକୁ ନିଜ ଗୁମ୍ଫା ଭିତରକୁ ନେଇଗଲା । ବିଲୁଆକୁ ସେ କିଛି ଖାଇବାକୁ ଦେଲା । ଏଥିରେ ବିଲୁଆର ମନ ଭରି ଖୁସି । ସେହି ଦିନଠାରୁ ସିଂହ ତାର ଗୁମ୍ଫା ଭିତରେ ଖାଲି ଶୋଇ ରହୁଥାଏ । ବିଲୁଆ ବାହାରେ ପହରା ଦେଉଥାଏ । ଗୁମ୍ଫା ନିକଟରେ ଯଦି କେତେବେଳେ କୌଣସି ପଶୁ ଦେଖାଯାଏ, ବିଲୁଆ ଝଟ୍‌ପଟ୍ ଗୁମ୍ଫା ଭିତରକୁ ପଶିଯାଇ କହେ—ମହାରାଜ; ଶିକାର ଜୁଟିଛି ।

ବିଲୁଆର କଥା ଶୁଣିବା ମାତ୍ରେ ସିଂହ ପଦାକୁ ବାହାରି ଆସେ । ଦି'ଗୋଟି କୁଦା ମାରି ସେ ଶିକାର ଧରିନିଏ । ଓ ତାକୁ ଖାଇ ଯାଏ । ସେଥିରୁ ଯାହା କିଛି ବଳିପଡ଼େ, ବିଲୁଆ ତାକୁ ଖାଇ ମନ ଖୁସିରେ ଦିନ କଟାଏ ।

ଯିମିତି ବାବାଜୀଙ୍କୁ ସିମିତି ଚେଲା ଜୁଟିଗଲା । ବିଲୁଆ ଯୋଗୁଁ ସିଂହକୁ ଆଉ ବାହାରକୁ ଯିବା ପଡ଼ିଲା ନାହିଁ । ସେ ନିଜ ଗୁମ୍ଫା ପାଖରେ ଶିକାର କରୁଥାଏ । ବିଲୁଆର ଆଉ ମଉଜ ଦେଖିବ କିଏ ? ପ୍ରତିଦିନ ନୂଆ ନୂଆ ଶିକାର ଖାଇ ଦେଳକୁ ଦେଳ ସେ ମୋଟା ହେବାକୁ ଲାଗିଲା ।

ଯେତେ ସୁବିଧାରେ ରହିଲେ କ'ଣ ହେବ ? ବିଲୁଆ ଜନମ ଠକ । ଦିନେ ସେ ମନେ ମନେ ଭାବିଲା—ଏ ସିଂହଟା ମୋଠୁ କେଉଁ ଗୁଣରେ ବଡ଼ ? ମୁଁ କଣ ତା' ଠାରୁ ବୁଦ୍ଧିରେ କମ୍, ନା ବଳରେ

କମ୍ ? ସିଂହ ନିଜେ ମୋର ଚାକର ହୋଇ ଗୁମ୍ଫା ଆଗରେ ପହରା ଦେଉଥିଲା, ତେବେ ମୁଁ କ'ଣ ତା' ଭଳି ଶିକାର କରିପାରନ୍ତି ନାହିଁ ?

ଏଇ କଥା ଭାବି ବିଲୁଆ ଦିନେ ସିଂହକୁ କହିଲା—ମୁଁ କ'ଣ ସବୁବେଳେ ଖାଲି ପହରା ଦେଉଥିବି ? ଦିନଟାଏ ଶିକାର କରନ୍ତି ନାହିଁ !! ମୁଁ ଭଲ ଶିକାର କରି ଜାଣେ । ଆପଣ ଦେଖିଲେ ଜାଣି ପାରିବେ ।

ସିଂହ ବିଲୁଆର ମନ କଥା ବୁଝିଗଲା । ସେ ଜାଣିପାରିଲା, ବିଲୁଆ ମନରେ ଭାରି ଗର୍ବ ହୋଇଗଲାଣି । ସେ ମଜା ଦେଖିବା ପାଇଁ କହିଲା—ଆଚ୍ଛା, ଏଣିକି ତୁ ଗୁମ୍ଫାରେ ରହ, ମୁଁ ପହରା ଦେଉଛି । ଜନ୍ତୁ ଆସିବାକ୍ଷଣି ମୁଁ ଖବର ଦେବି, ତୁ ଶିକାର କରିବୁ ।

ସିଂହର କଥା ଶୁଣି ବିଲୁଆର ଛାତି କୁଣ୍ଢେମୋଟ ହୋଇଗଲା । ସେ ହେଲା ରଜା, ସିଂହ ହେଲା ତା'ର ଚାକର । ସେ ଯାଇ ଗୁମ୍ଫା ଭିତରେ ଶୋଇ ରହିଲା, ବାହାରେ ସିଂହ ପହରା ଦେଲା ।

ତା' ପର ଦିନ ଗୋଟିଏ ଠେକୁଆ ସେ ବାଟ ଦେଇ ଯାଉଥାଏ, ତାକୁ ଦେଖି ସିଂହ ଗୁମ୍ଫା ଭିତରକୁ ଝପଟିଯାଇ ବିଲୁଆକୁ କହିଲା— ମହାରାଜ, ଶିକାର ଜୁଟିଛି ।

ବିଲୁଆ ଧଡ଼ପଡ଼ ହୋଇ ଉଠି ବାହାରକୁ ଆସି ଠେକୁଆ ପଛରେ ଗୋଡ଼ାଇଲା । ବିଲୁଆକୁ ଦେଖି ଠେକୁଆ ପବନ ବେଗରେ ଦୌଡ଼ିଲା । ଗୋଟିଏ ବୁଦାମୂଳେ ଗାତଟିଏ ଥିଲା । ଠେକୁଆ ହଠାତ୍

ତା'ର ଭିତରେ ପଶିଗଲା । ବଲୁଆ ସେଇ ଗାତ ଭିତରକୁ ଯାଇ ପାରିଲା ନାହିଁ । ସେଠି ବସି କିଛି ସମୟ ହୁକେ-ହୋ କଲା । ତା' କଥା ଶୁଣୁଛି କିଏ ? ଠେକୁଆ ତ ଗାତ ଭିତରେ ଆରାମରେ ବସିଛି ।

ଶିକାରୀ ମୁହଁରୁ ଶିକାର ଖସି ଯାଇଛି । ବଲୁଆ ମନା ଦୁଃଖରେ ଗୁମ୍ଫାକୁ ଫେରି ଆସିଲା । ତାକୁ ଦେଖି ସିଂହ ମୁରୁକେଇ ହସିଦେଲା । ସେ ବଲୁଆକୁ କହିଲା—କ'ଣ ମହାରାଜ, ଶିକାର ତ ଧରିପାରିଲ ନାହିଁ, ଏବେ ଖାଇବା କ'ଣ ?

ବଲୁଆ ଲାଜରେ ମୁଣ୍ଡ ପୋତିଦେଲା । ସେ ଆଉ କିଛି ନ କହି ଗୁମ୍ଫା ଭିତରେ ଶୋଇ ପଡ଼ିଲା ।

ତା' ପରଦିନ ହାତୀଟିଏ ସେଇ ବାଟେ ଯାଉଥିଲା । ସିଂହ ସାଙ୍ଗେ ସାଙ୍ଗେ ବଲୁଆକୁ ଖବର ଦେଲା । ବଲୁଆ ଖୋଳରେ ରାଗିକରି ଶୋଇଥିଲା । ଶିକାର କଥା ଶୁଣି ସେ ହାତୀ ଆଡ଼କୁ ଦୌଡ଼ିଯାଇ ତାର ଶୁଣ୍ଢ ଉପରକୁ କୁଦା ମାରିଲା । ହାତୀ ବଲୁଆକୁ ତା' ଶୁଣ୍ଢରେ ଟେକି ନେଇ ଦୂରକୁ ଫିଙ୍ଗିଦେଲା । ବଲୁଆ ବିଚରାର ବଳ ଅବା କେତେ ? କଚଡ଼ା ଖାଇ ତାର ଗୋଟିଏ ଗୋଡ଼ ଭାଙ୍ଗିଗଲା । ଏଣିକି ସେ ତିନି ଗୋଡରେ ଛୋଟେଇ ଛୋଟେଇ ଚାଲିଲା । ସେ ଦିନଠାରୁ ହାତୀକୁ ତାର ପ୍ରାଣ ଭୟ । ସେଥିପାଇଁ ସେ ହାତୀକୁ ଦୂରରୁ ଦେଖି ଡରରେ କେଉଁଠି ଲୁଚିଯାଏ ।





# ପାରା କିପରି ବଣୁରପତି ହେଲା ?

ସଞ୍ଜ ବେଳ । ଭଲକରି ଅସରାଏ ବର୍ଷା ହୋଇ ଯାଇଛି । କୋହଲ ପବନ ବହୁଛି । ଏ ଅଣ୍ଡା ପାଗରେ ପଦାକୁ ବାହାରିବ କିଏ ? ଆକାଶରେ ଗୋଟାଏ ବି ଚଢ଼େଇର ଦେଖା ନାହିଁ । ବେଳ ବୁଡ଼ିବା ଆଗରୁ ଯେ ଯାହାର ବସାକୁ ଫେରି ଆସିଲେ ।

ଦେଉଳ ପାଚେରୀକୁ ଲାଗି ଅଶ୍ୱତ୍ଥ ଗଛଟିଏ । ତା' ବୟସ କଳନା ହେବ ନାହିଁ । ଦୁଇ ଶ'କି ତିନି ଶ' ବରଷ ହେବ । ହେଲେ ବୁଢ଼ାଭଳିଆ ଦିଶୁ ନାହିଁ । ଶାଗୁଆ ପତ୍ରରେ ମଣ୍ଡି ହୋଇ ରହିଛି ତା' ଦେହ । ପବନ ସାଙ୍ଗରେ ତାଳ ଦେଇ ଥେଇ ଥେଇ ନାଚୁଛନ୍ତି ପତ୍ରସବୁ । ନାଚ ସହିତ ଆରମ୍ଭ ହୋଇ ଯାଇଛି ଗୀତ ଏକ ତାନରେ-ଫଟ୍ ଫଟ୍, ସଟ୍ ସଟ୍ ।

ସେଇ ଗଛରେ ପାଖାପାଖି ହୋଇ ରହିଛି ଦୁଇଟା କୋରଡ଼ । ଗୋଟିଏ କୋରଡ଼ରେ ରହେ ବଣିଟିଏ ତା' ଛୁଆଙ୍କୁ ନେଇ । ତା' ପାଖ କୋରଡ଼ରେ ରହେ ପାରାଟିଏ । ପାରାର ବି ତିନିଟା ଛୁଆ ତା' ଭିତରେ ଥାନ୍ତି । ପାରା ବିଚାରୀ ଭାରି ସାଦା ସିଧା, ଡରକୁଳ ମଧ୍ୟ । କାହା ସହିତ କେବେ କଳିଗୋଳ କରେ ନାହିଁ । ସିଧା ବାଟରେ ଯାଇ ସିଧା ବାଟରେ ଫେରି ଆସେ । ଦରକାର ହେଲେ କାହାକୁ କିଛି ପଚାରେ, ନ ହେଲେ ତା' ନିଜ ଧନ୍ଦାରେ ଚୁପ୍ ଚାପ୍ ଲାଗିଥାଏ ।

ବଣି କିନ୍ତୁ ଭାରି କୁହାଳିଆ ଆଉ କଳିହୁଡ଼ି । ନିତି କାହା ନାଇଁ କାହା ସାଥିରେ କଚରି ମିଚରି ଲଗେଇ ଥିବ । ସେତିକି ନ ହେଲେ ତା' ଆହାର ହଜମ ହେବ ନାହିଁ ଯେମିତି ! ବସାରେ ଥିଲାବେଳେ ସେ ସତ ମିଛ ଯୋଡ଼ି ଯାଡ଼ି ପାରା ଆଗରେ କେତେ କ'ଣ ଗପି ଚାଲିଥିବ । ଆକାଶର କଇଁଆ ଓ ତଳିକାର ମାଛ ଏକାଠି କରି ଆମ୍ବିଳ କରି ଥୋଇଦେବ । ପାରା ତା' କଥାରେ ଖାଲି ହୁଁ ମାରୁଥାଏ । ତା' ନ କରିବାକୁ ତାର ଚାରା କାହିଁ ? ଦୁଷ୍ଟକୁ ସଭିଏଁ ଡ଼ରନ୍ତି ।

ବଣି ନିଜର ବାହାଦୁରୀ କଥା ବୁଲି ବୁଲି କହେ । ସେଥିପାଇଁ ବେଶୀ ପକ୍ଷୀ ତାକୁ ଭଲ ପାଆନ୍ତିନି । ସେ ତା' ଛୁଆମାନଙ୍କୁ ବି ସେହିପରି ତାଲିମ ଦେଉଥାଏ । ତେଣୁ ଛୋଟ ବେଳୁଁ ସେମାନେ ଗପୁଡ଼ି ହୋଇଯାଆନ୍ତି ।

ଥରେ ଗୋଟିଏ ପଡ଼ିଆରେ ଅନେକ ପକ୍ଷୀ ବସି ଥାଆନ୍ତି । ଏତିକିବେଳେ ବଣି ଦେଖିଲା, ଘାସ ଉପରେ ଗୋଟିଏ ଝିଣ୍ଟିକା ବସିଛି । ସେ ପକ୍ଷୀମାନଙ୍କୁ କହିଲା—ମୋ ଛୁଆ କିପରି ଶିକାର କରୁଛନ୍ତି ଦେଖିବ ? ଏ ଦୁନିଆରେ କେହି ମୋ ଛୁଆଙ୍କ ଭଳି ଶିକାର କରି ପାରିବ ନାହିଁ ।

ବଣି ତାର ଗୋଟିଏ ଛୁଆକୁ ଝିଣ୍ଟିକା ଶିକାର କରିବାକୁ ପଠାଇଲା । ବଣି ଛୁଆ ଫୁର୍ କିନା ଉଡ଼ିଗଲା । ସେ ଝିଣ୍ଟିକାକୁ ଥଣ୍ଟରେ ଧରିଲା ବେଳକୁ ଗୋଟିଏ ବିଲେଇ ଝପଟି ଆସି ତା' ତଣ୍ଟିକୁ ଧରି ପକାଇଲା । ପ୍ରାଣ ବିକଳରେ ଝିଣ୍ଟିକାକୁ ଛାଡ଼ି ବଣିଛୁଆ କେଁ କେଁ ରଡ଼ି କଲା । ବଣି ତା' ପାଖକୁ ଉଡ଼ି ଆସିଲା ବେଳକୁ ବିଲେଇ ତା' ଛୁଆର ବେକ ମୋଡ଼ି ଦେଇ ସାରିଲାଣି । ବଣି ବିଲେଇକୁ ଖୁମ୍ପିବାକୁ ଚେଷ୍ଟା କଲା । ବିଲେଇ ବଣି ଛୁଆକୁ ନେଇ ଗୋଟିଏ କଣ୍ଟା ବୁଦା ଭିତରେ ପଶିଗଲା ।

ବଣିର ଛୁଆଟିଏ ମରିଗଲା । ସେ ମନ ଦୁଃଖରେ ବସାକୁ ଫେରିଲା । ହେଲେ ଏତିକିରେ ତା' ଦୁଷ୍ଟାମି ଗଲା ନାହିଁ । କଥାରେ ଅଛି ପରା ମୋତେ ଯେତେ ମାରିବୁ ମାର, ମୁଁ ସେଇ ଦରପୋଡ଼ା କାଠ ।

ଆଉ ଦିନକର ଘଟଣା । ସେଦିନ ସଞ୍ଜବେଳେ ପାରା ଛୁଆଟିଏ ଭୁଲରେ ବଣିର ବସା ମୁହଁରେ ଯାଇ ବସି ପଡ଼ିଲା । ବଣି ଛୁଆ ଏହା ଦେଖି ଅଉ କି ରହିଲେ ? ଆଖି ନାଲି କରି

ସେ ପାର୍ ଛୁଆ ଉପରକୁ କୁଦ ପଡ଼ିଲି । ତାର ମୁନିଆଁ ଥଣ୍ଟରେ ଖୁମ୍ପି ଖୁମ୍ପି ପାର୍ ଛୁଆକୁ ଖଣ୍ଡିଆ ଖାବର୍ କରି ପକାଇଲି । ପାର୍‌ଛୁଆ ଜୀବନ ନେଇ ନିଜ ବସାକୁ ଫେରି ଆସିଲି । ସେ ତା' ମା ଆଗରେ କାନ୍ଦି କାନ୍ଦି କହିଲି—ବଣି ଛୁଆ ମୋତେ କେମିତି ଖୁମ୍ପିଛି ଦେଖ ।

ପାର୍ ପଚାରିଲି—ବଣି ଛୁଆ ତୋତେ ଖୁମ୍ପିଲି କାହିଁକି ? ତୋର ଅଲବତ୍ କିଛି ଭୁଲ ଥିବ ।

ପାର୍ ଛୁଆ କହିଲି—ମୋର ଆଉ କିଛି ଭୁଲ ନାହିଁ, ମା । ମୁଁ ନ ଜାଣି ବଣି ମାଉସୀର ବସା ମୁହଁରେ ଟିକିଏ ଯାଇ ବସି ପଡ଼ିଲି । ଏତିକିରେ ମାଉସୀଙ୍କ ଛୁଆ ମୋ ଉପରେ ରାଗି ମୋତେ ଜୋରରେ ଖୁମ୍ପି ପକାଇଲି । ମୋ ଦେହସାରା ଖାଲି ଜଳୁଛି । ଦେଖୁନା, ଠାଏ ଠାଏ କିମିତି ରକତ ବାହାରି ପଡ଼ୁଛି !

ପାର୍ କହିଲି—ଯାହା ହୋଇଛି, ଠିକ୍ ହୋଇଛି । ପର ଦୁଆରକୁ ଯିବା ପାଇଁ ତୋତେ କିଏ କହିଥିଲି ? ତୋର ଘର ଦୁଆର କ'ଣ ପୋଡ଼ି ଜଳି ଯାଇଛି ?

ବଣି କାନରେ ଏ କଥା ଯିମିତି ପଡ଼ିଛି, ସେ ତ ରାଗରେ ନିଆଁ ବାଣ । ଦୁଆର ମୁହଁକୁ ଆସି ପାଟିକରି କହିଲି—ଆଲୋ ପାରୀ କେତେ ବଡ଼ପଣ କରି କହିଯାଉଛୁ । ମୋ ବସାକୁ ତୋ' ଛୁଆ ଆସୁଥିଲି

କଅାଁ ? ତାକୁ କ'ଣ ବରଣ କରି ଅଣିଥିଲ ? ମୋ ଝିଅ ତୋ' ବସାର ମୁହଁ କେବେ ମାଡ଼ିଲେଣି ?

ବଣିର ରାଗ ଦେଖି ପାରି ଟିକିଏ ନରମି ଯାଇ କହିଲା— ତୁମେ ରାଗୁଛ କାହିଁକି ଅପା ? ମୁଁ ମୋ ଝିଅଙ୍କୁ କହୁଛି, ତୁମ ବିଷୟରେ ପଦଟିଏ ବି କହି ନାହିଁ । ଆଜିକାଲି ଝିଅ ସବୁ ବାଲୁଙ୍ଗା ପାଲଟି ଗଲେଣି ।

ପାରି କଥାରେ ଝିଅଧରି ବଣି କହିଲା—କ'ଣ କହିଲୁ ସବୁ ଝିଅ ବାଲୁଙ୍ଗା ? ଦେଖିଲୁ ମୋ ଝିଅଙ୍କୁ, ଚହଲିଲା ପାଣିକୁ ପାଦ ବଢ଼ାଇବେନି । ଲୀଳ ମାଡ଼ୁନି ତୋ' ମୁହଁକୁ ? ତୋର ଏତେ ସାହାସ ମୋର ସୁନା ପରି ଝିଅଙ୍କୁ ବାଲୁଙ୍ଗା କହିବୁ ! ଅଲୋ ଅଲପେଇସି, ବସାରୁ ବାହାର ଦେଖି । ତୋ' ଗୋଡ଼ ଦି'ଟାକୁ ଯଦି ଥଣ୍ଟିଅରେ ଫାଡ଼ି ନ ଦେଇଛି, ତେବେ ମୁଁ ବଣି ଜାତର ନୁହେଁ ।

ବଣିର ଧମକରେ ପାରି ଛାନିଆ ହୋଇଗଲା । ଡ଼ରରେ ତା' ଛାତି ଖାଲି ପଡ଼ିଲା, ଉଠିଲା । ବଣି ତ ଗୁରୁଦଉଡ଼ି କଣ୍ଟା କେତେବେଳେ କ'ଣ କରି ବସିବ । ସେଥିପାଇଁ ସେ କଅଁଳେଇ କହିଲା—ନାଇଁ ମ ବଣି ଅପା, ତୁମେ ତୁଚ୍ଛା କଥାରେ ଏମିତ ରାଗି ଯାଉଛ କାହିଁକି । ମୁଁ ତ ତୁମକୁ କି ତୁମ ଝିଅଙ୍କୁ କିଛି କହିନି । ମୋ ଝିଅଟାକୁ ଟିକିଏ ତାଗିଦ କରି କହୁଥିଲି । ଆଜିକାଲିକା ଝିଅଗୁଡ଼ା ହାରି ତଗଲା, ଟିକିକ କଥାରେ ଖାଲି ମାରପିଟ ।

ଏତକ୍ଷଣରେ ବଣିର ରାଗ ପଞ୍ଚମରେ ଯାଇ ପହଞ୍ଚିଗଲା । ସେ ପାଟି କରି କହି ଉଠିଲା—କିଲୋ, ଚୁଆଗୁଡ଼ା ଚଗଲା ଆଉ ତୋ' ଚୁଆଗୁଡ଼ା ଖାଣ୍ଟି ସୁନା ? ଦେଖାଇ ଶିଖାଇ ମୋ ଚୁଆଙ୍କୁ ଗାଳି ଦେବୁ ? ରହ, ଏଇନେ ତୋ' ମଜା ନିକାଳି ଦେଉଛି ।

ଏହା କହି ବଣି ଯେମିତି ପାରା ବସାକୁ ଉଡ଼ି ଆସିଲା, ପାରା ଓ ତା' ଚୁଆମାନେ ଭୟରେ ବାହାରକୁ ଉଡ଼ି ପଳାଇଲେ । ଠିକ୍ ଏତକବେଳେ ଗୋଟିଏ ମସ୍ତ ବଡ଼ ବଣୁଆ ଚିତି ସାପ ପାରାର ବସା ପାଖରେ ପହଞ୍ଚି ଥାଏ । ବଣି ପାରାର ବସାରେ ପଶି ତା' ଭିତରୁ କାଠିକୁଟା ବାହାର କରି ରାଗରେ ଫିଙ୍ଗି ଦେଉଥାଏ । ଚିତି ସାପ ପାରାର ବସା ଭିତରକୁ ମୁହଁ ବଢ଼ାଇ ବଣିର ଗୋଡ଼କୁ ଚଟ୍‌କିନା ଧରି ପକାଇଲା । ବଣି ଚଁ ଚଁ କରି ବିକଳରେ କେତେ କାନ୍ଦିଲା । ସାପ ହାବୁଡ଼ରୁ ସେ ଫିଟୁଛି କେତେବେଳେ ?

ବଣିଚୁଆମାନେ ବସାରୁ ପଦାକୁ ବାହାରି ଆସିଲେ । ସେମାନେ ମା'ର ଦୁର୍ଦ୍ଦଶା ଦେଖି ରଡ଼ି ଛାଡ଼ିଲେ । ସାପ ବଣିକୁ ଗିଳି ଦେଇ ତା' ବାଟରେ ସେ ଚାଲିଗଲା ।

ତା' ପରଦିନ ସକାଳେ ପାରା ନିଜ ଚୁଆଙ୍କୁ ନେଇ ବସାକୁ ଫେରି ଆସିଲା । ଶୁଣିଲା, ବଣି ବସାରେ କାନ୍ଦ-ବୋବାଳି ପଡ଼ିଛି । ବଣି ଚୁଆମାନେ ବିକଳରେ ଖାଲି ମୁଣ୍ଡ କଚାଡ଼ୁଛନ୍ତି । ପାରା ସେମାନଙ୍କ ସବୁ ଘଟଣା ଶୁଣିଲା । ସେ ସେମାନଙ୍କୁ ସାନ୍ତ୍ୱନା ଦେଇ କହିଲା—ଆଉ କାନ୍ଦନା, ଯେତେ ମୁଣ୍ଡ

କଚୃଡ଼ିଲେ ବି ମା' କି ଆଉ ଫେରି ଆସିବ ? ତୁମ ମା' ମରିଗଲେ ବି ମୁଁ ବଞ୍ଚି ରହିଛି । ମୁଁ ତୁମ ମାଉସୀ, ମା ଭଳି । ମୋ ମୁହଁକୁ ଚାହିଁ ତୁମେ ଦିନ କାଟ । ଏଣିକି ଆହାର ଯୋଗାଡ଼ କରି ବଞ୍ଚିବ, ସେଇ ଉପାୟ କର । ପର କଥାରେ ମନ ନଦେଇ କାହା ସହିତ କଳିକଜିଆ ନକରି ନିଜ ଧନ୍ଦାରେ ଲାଗିପଡ଼ ।

ଅନ୍ୟ ପକ୍ଷୀମାନେ ଏ ଘଟଣା ଶୁଣିଲେ । ସେମାନେ ବଣିର ବୁଦ୍ଧିକୁ ଛି ଛାକର କଲେ, ପାରିକୁ ଧନ୍ୟ ଧନ୍ୟ କଲେ । ସେମାନେ ପକ୍ଷୀମାନଙ୍କର ଗୋଟିଏ ସଭା ଡାକିଲେ । ସେଠି ପାରିକୁ ସେମାନଙ୍କ ବଚୃରପତି ରୂପେ ବାଛିଲେ ।

ପାରିର କଥା ଶୁଣି ବଣି ଛୁଆମାନେ କାନ୍ଦ ବୋବାଳି ଛାଡ଼ି ଆହାର ଯୋଗାଡ଼ କରିବା ପାଇଁ ବାହାରି ପଡ଼ିଲେ । ପାରି ନିଜ ବସାକୁ ଆସି ତା' ଛୁଆକୁ କହିଲା—କଥା କଥାକେ ଅନ୍ୟ ସହିତ ଝଗଡ଼ା କରିବା ଠିକ୍ ନୁହେଁ । ତୁମେ ପରା ନିଜ ଆଖିରେ ଦେଖିଲ, କଳହୁଡ଼ି ବଣିର ଦଶା କ'ଣ ହେଲା । ସେଥିପାଇଁ ପାଞ୍ଚ ଜଣଙ୍କ ସହିତ ମିଳାମିଶି ଚଳିବା ହିଁ ଠିକ୍ ।



ତ୍ରିମୂର୍ତ୍ତି ପ୍ରିଣ୍ଟର୍ସ, ବ୍ରହ୍ମପୁର-୧

# ଆମ ପ୍ରକାଶିତ କେତୋଟି ଶିଶୁ ଉପଯୋଗୀ ପୁସ୍ତକ

ଆମ ଜଗା-କଳିଆ
ଲାଲା ଲଜପତ୍ ରାୟ
ବାଳ ଗଙ୍ଗାଧର ତିଳକ
ବିପିନ୍ ଚନ୍ଦ୍ର ପାଲ
ମହାନ୍ ଜ୍ୟୋତି ମହାତ୍ମା ଗାନ୍ଧୀ
ଓଡ଼ିଶାର କିମ୍ବଦନ୍ତୀ ଓ କାହାଣୀ
ପିଲାଙ୍କ ପୁରାଣ ଗଳ୍ପ (୧ମ, ୨ୟ)
ସନ୍ତ ଜନନାୟକ
ସନ୍ତଜନ ନାୟିକା
ଶହୀଦ ଲକ୍ଷ୍ମଣ ନାୟକ
ପାରିବା ପିଲା
ଠିଆପୁଚି ନାରଙ୍ଗ
ମୋ ଦେଶ ମୋ ମାତୃଭୂମି
ଆକାଶର ଝିକିମିକି ତାରା
ଷଣ୍ଢ ସମ୍ବାଦ
ଆମ କାହାଣୀ
ପିଲାଙ୍କ ଯଦୁମଣି

❋